# ମୋର ଦୁଇପଦ

୨୪-୧୧-୭୭

ପ୍ରିୟ ସାହିତ୍ୟ ପ୍ରେମୀ ପାଠକ ପାଠିକା ବୃନ୍ଦ,

ସର୍ବ ପ୍ରଥମେ ଆପଣମାନଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଇ ମୋର ବକ୍ତବ୍ୟ ଆରମ୍ଭ କରୁଛି । ଆଜି ଆପଣମାନେ ଯେଉଁ "ଉତ୍କଳ-ବିଳାପ" ଛନ୍ଦ ବାକ୍ୟଟିକୁ ପଢ଼ିବାର ସୁଯୋଗ ପାଉଛନ୍ତି ତାହା ଆଜକୁ ସାତ ଆଠ ବର୍ଷ ତଳେ ରଚିତ ହୋଇ ଥିଲା । ସେତେବେଳେ ମୁଁ ଥାଏ ଚନ୍ଦନନଗର ପି ଏଲ୍ ବିଦ୍ୟାପୀଠ ଦଶମ ଶ୍ରେଣୀର ଜଣେ ଛାତ୍ର ।

୧୯୬୯ ରେ 'ଉତ୍କଳ ବିଳାପ' ରଚିତ ହୋଇଥିଲା; କିନ୍ତୁ ମୁଁ ୧୯୭୧ ମସିହାରେ ପି ୟୁ ପଢ଼ିବା ପାଇଁ ରେଭେନ୍ସା କଲେଜରେ ନାମ ଲେଖାଇଲି । ସେତେବେଳ ପର୍ଯ୍ୟନ୍ତ ମୁଁ ଯେତେ କାବ୍ୟ କବିତା ରଚନା କରିଥାଏ ସେଥି ମଧ୍ୟରୁ ମୋର ବନ୍ଧୁମାନେ 'ଉତ୍କଳ ବିଳାପ' କାବ୍ୟକୁ ଏକ ସାର୍ଥକ ସୃଷ୍ଟି କହି ଏହାର ପ୍ରକାଶ ପାଇଁ ମୋତେ ଉତ୍ସାହିତ କରୁଥାନ୍ତି । ମାତ୍ର ୧୯୭୨ରେ ଓଡ଼ିଶା ଉପରେ ପୁଣି ଥରେ ପ୍ରକୃତିର କ୍ରୋଧ ଦୃଷ୍ଟି ପଡ଼ିଲା । ୧୯୬୯ର ବାତ୍ୟାଠାରୁ ଲୋକମାନଙ୍କର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇ ପଡ଼ିଥାଏ । ହବହବ ଧାନ ମଜିଗଲା ଖଟିଖିଆ ଲୋକଙ୍କର ଅବସ୍ଥା କଥା ଭାଷାରେ ବର୍ଣ୍ଣନା କରିବାର ନୁହେଁ । ମୋତେ ବୋଧ ହେଲା 'ଦୁଃଖିନୀ ଉତ୍କଳ ମାତା' ଯେପରି ପୁତ୍ରମାନଙ୍କ ଦୁଃଖରେ ମିୟମାଣ ହୋଇ ବୁଲି ବୁଲି ବିଳାପ କରୁଛନ୍ତି । ତା ପୂର୍ବରୁ 'ଉତ୍କଳ ବିଳାପ' ଲେଖା ସରିଥିଲେ ବି ମୁଁ ସେଥିରେ ସାମାନ୍ୟ କେତେକ ପରିବର୍ତ୍ତନ କରି ପ୍ରକାଶପାଇଁ ଓଡ଼ିଆ ସାହିତ୍ୟ ଏକାଡେମୀର ହାତକୁ ଦେଲି ୧୯୭୧ ମସିହାରେ । ମାତ୍ର ପ୍ରକାଶ ପାଇଁ ମୋତେ କୌଣସି ସାହାଯ୍ୟ ମିଳି ପାରି ନ ଥିଲା । ଯାହା ହେଉ ବଡ଼ ଆନନ୍ଦର ବିଷୟ ଏହିକି, ଆଜି 'ଉତ୍କଳ ବିଳାପ' କାବ୍ୟ ମୋ ଲେଖାର ପ୍ରଥମ ଅର୍ଘ୍ୟ ସ୍ୱରୂପ ଆପଣମାନଙ୍କ ହସ୍ତରେ ଟେକି ଦେଉଛି । ଏକ ଦେଶାତ୍ମ ବୋଧ-ପ୍ରଜ୍ଞ ଧର୍ମୀ ଛନ୍ଦକାବ୍ୟ ଭାବରେ ଏହା ଆପଣମାନଙ୍କୁ କିଞ୍ଚିତ ଆନନ୍ଦ ଦେଇ ପାରିଲେ ଶ୍ରମ ସାର୍ଥକ ହେବ । ଇତି ।

ଶୁଭମସ୍ତୁ କ୍ଷିତି—କୁମାର ପୂର୍ଣ୍ଣିମା

**ଲେଖକ**

# 'ଉତ୍କଳ ବିଳାପ' ଓଡ଼ିଆ ସାହିତ୍ୟ ଭଣ୍ଡାରର ଅମୂଲ୍ୟ ରତ୍ନ

ଉଦୀୟମାନ ତରୁଣ କବି ଶ୍ରୀମାନ୍ ଭ୍ରମରବର ଛୋଟରାୟଙ୍କର "ଉତ୍କଳ ବିଳାପ" କାବ୍ୟଟିକୁ ପଢ଼ି ମୁଁ ଅତ୍ୟନ୍ତ ଭାବ ବିହ୍ୱଳ ହୋଇ ପଡ଼ିଲି । ଉତ୍କଳ ପ୍ରକୃତିକୁ ଜୀବନ୍ତ ରୂପଦେଇ ସେ ଏପରି ଏକ ଜାତୀୟ ଚେତନାଧର୍ମୀ ଉଚ୍ଚକୋଟୀର କାବ୍ୟ ସୃଷ୍ଟି କରିବେ ତାହା ମୁଁ ଆଗରୁ କଳ୍ପନା କରି ପାରି ନଥିଲି । ଉତ୍କଳ ଜନନୀର ନିଜ ମୁଖରେ ତାର ଦୁଃଖ ଦୁର୍ଦ୍ଦଶାର କାହାଣୀ ଭାରତଜନନୀ ସମ୍ମୁଖରେ ସେ ଯେପରି କୁହାଇ ପାରିଛନ୍ତି ଓ ଏହି ସମସ୍ୟାର ସମାଧାନ ପାଇଁ ଅନୁକୂଳ ସମାଧାନ ବ୍ୟବସ୍ଥା ଚିନ୍ତା କରିଛନ୍ତି ତାହା ତାଙ୍କ କବିଙ୍କ କଳ୍ପନା ଶକ୍ତିର ସ୍ୱାତନ୍ତ୍ର୍ୟତା ଭିନ୍ନ ଅନ୍ୟ କିଛି ନୁହେଁ ।

**ବିଷୟ ବସ୍ତୁ:**—"ଉତ୍କଳ ରାଜକୁମାର ଥରେ ରାତି ସମୟରେ ଉଦ୍ୟାନ ମଧ୍ୟରେ ଭ୍ରମଣ କରିବେଳେ କ୍ରନ୍ଦନରତା 'ଉତ୍କଳମାତା'କୁ ଦେଖିଛନ୍ତି । ଗୋପବନ୍ଧୁଙ୍କ ପରି ଯୋଗ୍ୟ ପୁତ୍ରର ଚିରନିଦ୍ରାରେ ଉତ୍କଳମାତା ତାଙ୍କର ମୃତ ପିଣ୍ଡକୁ ଧରି କ୍ରନ୍ଦନ କରିଛନ୍ତି । ତାପରେ ଅର୍ଦ୍ଧରାତ୍ରି ସମୟକୁ ସ୍ୱର୍ଣ୍ଣ ବିମାନରେ ବସି ଅନ୍ୟାନ୍ୟ ପ୍ରଦେଶମାନଙ୍କ ସହିତ ଭାରତମାତା ଆସି ସେଠାରେ ଉପସ୍ଥିତ ହୁଅନ୍ତି । ଭାରତମାତାଙ୍କ ଆଗରେ ଉତ୍କଳ ତାର ସମସ୍ତ ଦୁଃଖ ଦୁର୍ଦ୍ଦଶାର କାହାଣୀ ବର୍ଣ୍ଣନା କରେ । ସମସ୍ୟାର ସମାଧାନ ପାଇଁ ଭାରତମାତା ତାକୁ ନାନା ପ୍ରକାର ପରାମର୍ଶ ଦେଇ ପ୍ରସ୍ଥାନ କରନ୍ତି ।"

ମାତ୍ର ଏହି କାବ୍ୟର ଶବ୍ଦ ସଂଯୋଜନା ଅତ୍ୟନ୍ତ ଉଚ୍ଚକୋଟୀର ମନେ ହୁଏ । ମୋର ଦୃଢ଼ବିଶ୍ୱାସ, କାବ୍ୟଟି ନିଶ୍ଚିତ ଉତ୍କଳର ଅଗଣିତ ସାହିତ୍ୟପ୍ରେମୀ ବୁଦ୍ଧିଜୀବୀ ତଥା ଅସଂଖ୍ୟ ରସଜ୍ଞ ଜନତାର ମନୋରଞ୍ଜନ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟ ଭଣ୍ଡାରର ଏକ ଅମୂଲ୍ୟରତ୍ନ ହୋଇ ରହିବ । ଇତି ।

ତା ୨୪-୧୧-୭୨

ଶ୍ରୀ ଶୁକଦେବ ସ୍ୱାଇଁ ଏମ୍. ଏ.
କଟକ

# ଉତ୍କଳ ବିଳାପ

( ଛନ୍ଦ କାବ୍ୟ )

## ରାଗ-ରାମକେରୀ

କଳିଙ୍ଗ ନରେଶ ତନୟ
ସାଥୀ ସଙ୍ଗାତ ମେଳେ ।
ଭ୍ରମୁଥିଲେ ବନେ ଉଦ୍ୟାନ
ତରୁ ଦ୍ରୁତଷଣ୍ଡ ତଳେ ।୧।

ଅସ୍ତରାଗ ହେମ କଇଣ
ଟଲ୍ଲ ପରଶି ମସ୍ତା,
କାକଳୀ-କୂଜନେ ମଙ୍ଗଳେ
ମଧୁ ସମ୍ଭାଷ ଦେଇ ।୨।

ସରସୀ ସରସ ରସରେ
ସ୍ରୁବ କନକ ଧାର,
ପ୍ରକଟ ହେଲା ପଲ୍ଲୀ ସଣୀର
ଶାତକୁମ୍ଭ ଭଣ୍ଡାର ।୩।

କଳ କଲ୍ଲୋଳିନୀ ହିଲ୍ଲୋଳେ
ଝଟେ ସ୍ୱର୍ଣ୍ଣ ମାଟି,
ମନ୍ଦଗନ୍ଧବହ ପରଶେ
ଉର୍ମିମାଳା ପ୍ରସର ।୪।

ଶ୍ୟାମ ପଲ୍ଲୀ ରମ୍ୟ ସୁଷମା
ହରେ ଜନ-ନୟନ,
ପଲ୍ଲୀ ଆମ୍ରକୁଞ୍ଜେ କଳଙ୍ଗ
ରଙ୍ଗ ମଧୁଗାୟନ ।୫।

ଗୋଷ୍ପଦ ରେଣୁକା ପଟଳ
ବେଣୁବେଳ ପ୍ରବଳ,
ଗୋପାଳ ତନୟ ବଂଶୀର
ମଧୁ-ଝର-ନିସ୍ୱର ।୬।

---

୧ । ବ୍ରତତି-ଲତା, ୨ । ହେମ-ସୁନା, କାକଳୀ-କୁଜନ ବିହଗରବ,
୩ । ସରସୀ-ପୁଷ୍କରିଣୀ, ରସରେ-ଜଳରେ, ସ୍ରୁବ-ପଡ଼ିଛ ହୋଇ,
କନକ-ସୁନା, ଶାତକୁମ୍ଭ-ସୁନା ।
୪ । ହିଲ୍ଲୋଳ-ତରଙ୍ଗ, ଗନ୍ଧବହ-ପବନ, ଉର୍ମି-ଢେଉ ।
୫ । କଳଙ୍ଗ-କଜଳପାତି ।

ସ୍ମୃତି ସ୍ତୂପ ବିଳେ ବିଗ୍ରହ
                ପୁଲକିତ ସବୁରି
ସିନ୍ଧୁ ଦ୍ୟାବାତେଜ ବିହଙ୍ଗେ
                ଗଲେ ନଡ଼େ ବାହୁଡ଼ ।୭।

ବିଦ୍ୟାଳୟୁ ଫେରି ବାଳୟେ
                ବାଳଗୃଠ ସକଳ
ଭୋଜନ ନିମିତ୍ତ ଜନନୀ—
                ପାଶେ ଜଞ୍ଜାଳ ହେଲ ।୮।
ନବବଧୂ ବଧୂ-ହାସିନୀ
                ପଲ୍ଲୀବାଳା ଚପଳେ
ବାମ କାଖେ ଗୃପି କଳସୀ
                ମାଳ ସରସୀ କୂଳେ ।୯।
ଘଟେ ଭରି ଆଳୀ କଲାଳ
                କରି କରୀ-ଗମନ
କୁରଙ୍ଗ ରଙ୍ଗରେ ଗୃହାନ୍ତେ
                ଶୋଭି ହରିଲେ ମନ ।୧୦।

ଝରି ପଡ଼େ ଅବା ଅଧରୁ
                ରଙ୍ଗ-କିଂଶୁକ-ଦଳ
କଳା କନ୍ୟାକା ଚେଲାରେ
                ତାମରସ ମଞ୍ଜୁଳ ।୧୧।

---

୭ । ବିଗ୍ରହ-ଶରୀର, ଦ୍ୟାବା-କୂଳ ।
୯ । ବଧୂ-ହାସିନୀ-ଚନ୍ଦ୍ରହାସିନୀ, ୧୦ । ଆଳୀ-ସ୍ତ୍ରୀଲୋକ,
କଲାଳ-ଜଳ, କରୀ-ଗଜ, ୧୧ ।କିଂଶୁକ-ଶିମୂଳି ଫୁଲ ।

ପଲ୍ଲୀର ବନ୍ଧୁର ପଥରେ
　　　　ଗୁପିଗୁରୁ ଚରଣ
ଗମନେ କୋମଳ ଚରଣେ
　　　　ଘାଜତ କ କଦନ ? । ୨।

ନବ ଶଷ୍ପାଙ୍କୁର ପଯୂରେ
　　　　ଯାଉଥିବା ବା ଫୁଟି !
ନତମୂଖେ ଗମି ପ୍ରମୋଦା
　　　　ଗଣି ପାଦୁକ ଗୋଟି ।୧୩।

ପ୍ରବେଶିଲ ବଳେ ସହସା
　　　　ଚକ୍ର-ଚକ୍ର କାରୁଣ୍ୟ
ଚକ୍ରବାଳ ସୀମା ଛୁଇଁଲେ
　　　　ଶେଷ ହେଣ ଅରୁଣ ।୧୪।

ରୁଦ୍ରବ ରୁଦ୍ରବୀ ମନ୍ଦିରୁ
　　　　କମ୍ବୁ ମର୍ଦ୍ଦଳ ଭେରୀ
ଗରଜଲ ପିତୃପ୍ରସୂରେ
　　　　ଘଣ୍ଟା ତୂରୀ ମହୁରୀ ।୧୫।

ଭାଗବତ ଘରେ ଗାୟକ
　　　　ବାକ୍ୟ ପୁଞ୍ଜିତ ଜନ
ଭଗବତ ପ୍ରେମେ ନମନ୍ତୀ
　　　　କରିବାକୁ ଶ୍ରବଣ ।୧୬।

---

୧　। କଦନ-ପୀଡ଼ା, ୧୩ । ଶଷ୍ପା-ଦୁବଘାସ,
　　ଚକ୍ର-ଚକ୍ରବାକ, ଶ୍ରେଣୀ ।
୧୪ । ଚକ୍ରବାଳ-ଦିଗ୍‌ବଳୟ, ୧୫ । ରୁଦ୍ରବ-ଦେବତା, କମ୍ବୁ-ଶଙ୍ଖ,
　　ପିତୃପ୍ରସୂ-ସନ୍ଧ୍ୟା, ।

ଜଳାଇ ଉଜ୍ଜ୍ୱଳ ପ୍ରଦୀପ
ହବ ସଂଯୋଗୀ ଚନ୍ଦ୍ର
ପଲ୍ଲୀ ସିମନ୍ତିନୀ ପ୍ରମୋଦେ
ସନ୍ଧ୍ୟାବତୀ ଜଳାଇ ।୧୭।
ଗ୍ରାମ୍ୟ ଦୂରବନ କେତକୀ-
ବନୁ ଡାହୁକ ରବ
କୁମ୍ଭାଟୁଆ, ପିକ, ବାୟସ,
କୀର, କୌଞ୍ଚ ଶବଦ ।୧୮।
ଟିକ ଟିକ ଦେଣା ଖେଳାଇ
ସମୀରଣେ ପତଙ୍ଗ
ସନ୍ଧ୍ୟା ଉପଗତେ ଦେଖାଇ
ଲୋଳ କ୍ରୀଡ଼ା ତରଙ୍ଗ ।୧୯।
"ଗାଁ ଆମ୍ରକୁଞ୍ଜ ସେପଟେ
ମସୀ-ବଦନେ-ଶଶୀ
ଅମ୍ବର ଗଗନେ ନମ୍ବର—
ଧୀରେ ଆସିଲେ ହସି ।୨୦।
ଧରଣୀ-ରାଣୀକୁ ଦେବାକୁ
ଭକ୍ତପ୍ରେମ ଦର୍ଶନ
ବଳୟୁ ରଜତ-ସ୍ୟନ୍ଦନେ
ଜ୍ୟୋତ୍ସ୍ନାମାଳୀ ସୁମନ ।୨୧।

---

୧୭ । ହବ-ଘୃତ, ୧୮ । ପିକ-କୋଇଲ, ବାୟସ-କାଉ,
କୀର-ଶୁଆ, କୌଞ୍ଚ-ବଗ, ।
୨୦ । ମସୀ-କଳଙ୍କ, ୨୧ । ରଜତ-ସ୍ୟନ୍ଦନ-ରୁପାର ବିମାନ, .

ପୁଞ୍ଜିତ ଗ୍ରହାଣୁ ପୁଞ୍ଜ କି
　　　　ରଥ ତୁରଙ୍ଗ ମାଳ
ଯାମୀର ତମିର ନାଶନେ
　　　　ଉପସ୍ଥିତ ଚଞ୍ଚଳ !" ।୧୨।
※ "ବଳେକି କମଳ-କୁମାର
　　　　ମୁଦ କମଳ-ସୁତ
କମଳ-କୁମାର ପୀରତି
　　　　ରହିଁ କମଳ ପ୍ରୀତ ।୧୩।
କୁମାର କୁମାରୀ ପୀରତି
　　　　ସିନା ଘଟେ ସଂସାରେ
କମଳକୁମାର ପୀରତି
　　　　କମଳ କୁମାରରେ ।୧୪।
କମଳ କୋମଳ ବଦନ
　　　　ଗଲା ଶୁଖି ଜଟେତ ନଈଁ
କମଳ ଛଦନେ ରହିଲା
　　　　ନତ ବଦନ ହୋଇ" ।୧୫।
ଦୂର ପରବତ ଶିଖରେ
　　　　ଜ୍ୟୋତିରଙ୍ଗଣ-ପ୍ରଭା
ବହୁଗୁଣ କଲେ ବଢ଼ାଇ
　　　　ବିଭାବରୀର ବିଭା ।୧୬।

---

୧୩ । କମଳକୁମାର ପଦ୍ମ, କଇଁ, ଚନ୍ଦ୍ର, କମଳ-ପଦ୍ମ, ଜଳ, ଆକାଶ ।

୧୬ । ଜ୍ୟୋତିରଙ୍ଗଣ-ଜୁଳୁଜୁଳା ପୋକ,

ନିଶବଦ ଧସ୍ୱ ବକ୍ଷରେ
ଭର ଶାନ୍ତ କଲ୍ଲୋଳ
ନାଉରୀ ଉଦ୍ଦାମ ସଙ୍ଗୀତେ
ଧୂନୀ ଉଠେ ମୂର୍ଚ୍ଛରେ ।୨୭।
ସୁମନ ସୌରଭରେ ସରଣୀ
ପରା ସୁଗନ୍ଧୀ ପୂତ
କୁଟଜ-କୁନ୍ତଳ ବିକଶି
ଦୋଳେ ଯୂଥକୁ ଯୂଥ ।୨୮।
ଗୀତାର ସଙ୍ଗୀତ ଝଙ୍କାର,
ଭାସି ମନ୍ଦ ଅନିଳେ
ପଡ଼ଶୁଣି ଦୂରୁ କେବେ ବା
ଜନ ଶ୍ରବଣ ତଳେ ।୨୯।
ଝିଲ୍ଲୀ ଝଙ୍କାରିତ ଶବଦ
ନାଦେ ଶର୍ବରୀ ଭର
ମିଟି ମିଟି ନୀଳ ଅମ୍ବରେ
ଗୋଟି ଗୋଟିକା ତାର ।୩୦।
ନାମ ସଂକୀର୍ତ୍ତନେ ଉନ୍ମତ୍ତ
ପଲ୍ଲୀ ଯୁବକ ଗଣ
ପ୍ରତି ଘରେ ଘରେ ଶୁଭଇ
ବେଦ ପାଠ ପୁରାଣ ।୩୧।

---

୨୭ । ଧୂନୀ-ନଦୀ, ୨୮ । ସୁମନ-ପୁଷ୍ପ, ସୌରଭ-ଗନ୍ଧ, ସରଣୀ-ପଥ, ୨୯ । ଅନିଳ-ପବନ ।

କୃଷିକ୍ଷେତ୍ରୁ ଫେରି କୃଷକେ
ସନ୍ଧ୍ୟେ ଭାବନାରତ
ଭବ ଭାବନୀ ତା' ସ୍ମୃଏ
ଫଳ ପୁରୁଷ ପଥ ।୩୨।
ଋଜନୀରେ ଦଶ ସଜନୀ
ଘାଟେ ବସିକ ମିଳି
ସଂଶୁଥିବ ଧନ-କରମ
ଘାନ କରମ ଭ୍ଲଳ ।୩୩।
ପ୍ରବେଶିଲ୍ଲ ନିଶା ଯୌବନ
ଧରା ସ୍ତବ୍ଧ ନଥର
କେତେବେଳେ କେବେ ଶୁଭୁଛି
ଆର୍ତ୍ତ ଚକୋରୀ ସ୍ୱର ।୩୪।
ଆନନ୍ଦ ଉଦ୍ୟାନେ ଭ୍ରମନ୍ତେ
ସାଥୀମାନେ କୁମାର
ବାରି ନ ପାରିଲେ ସମୟୁ
କ୍ରୀଡ଼ା ରଙ୍ଗେ ବିଭୋଳ ।୩୫।
ସହସା ପସିଲ୍ଲ ଚେତନା
ଗୃହେଁ ଅମ୍ବର-ନାଥ
ସହ କ୍ରୀଡାର୍ଥୀ ଏ ସଦନେ
ଗଲେ ହୋଇ ବିବ୍ୟସ୍ତ ।୩୬।

---

୩୨ । ସନ୍ଧ୍ୟ-ଗୃହ, ୩୩ । ବସିକ ଗଣିବ, ୩୪ । ଧରା-ପୃଥ୍ୱୀ
୩୬ । ଅମ୍ବରନାଥ -ଚନ୍ଦ୍ର ।

ମାନ୍ଧ ସୁକୁମାର କଳଙ୍ଗ
ନୃପ ତନୁଜ ଏକା
ସଙ୍ଗତରେ ଥିଲେ ଅମାତ୍ୟ
ସୁତ ପରାଣ ସଖା ।୩୭।
ବାଟୀକା ପାଦପ ପାଦରେ
ବସି ଭାଲେ କୁମାର
ଆହାଃ କି ଅପୂର୍ବ ଶୋଭାରେ
ଧରା ବକ୍ଷ ଉପର !! ।୩୮।
"ବସାଇ ନିକଟେ ଦର୍ଶାଇ
ଉପବନ ଉଦ୍ୟାନ
କେତେ କି ସୁନ୍ଦର ବଣାଇ
ବୃକ୍ଷରେ ସୁମନ ! ।୩୯।
ମାଳ ମାଳ ହୋଇ ପାଦପେ
ଦେଖ ବସନ୍ତ ଶୋଭା
* ଝଲଝଲ ପ୍ରଜାପତିରେ
କେଉଁ ସୁମନ ଲୋଭା ।୪୦।
ଛନ୍ଦାଛନ୍ଦ ହୋଇ ବୃକ୍ଷେ
ଏକୁ ଆରେକ କର
ବନ୍ଧା ବନ୍ଧି ହୋଇ ରହିଛି
ଶାଖେ ଶୀଉଳୀ ଦଳ ।୪୧।

---

୩୮ । ବାଟୀକା-ଉଦ୍ୟାନ, ପାଦପ-ବୃକ୍ଷ,
୪୦ । ପ୍ରଜାପତି-ଖେଚର ପ୍ରଜାପତି ବା ପଥି

ମନ୍ଦାମନ୍ଦ ବାସ କୁସୁମେ
ସୁରଭିତ ବାଟିକା,
ଫେନ୍ଦା ଫେନ୍ଦା ଫଳ ଲମ୍ବେ
ଶାଖୀନବ ସୃଷ୍ଟିକା ।୪୨।
ଶନ ଶନ ମନ୍ଦ ସମୀରେ
ରଙ୍ଗ ରଙ୍ଗଣୀ ଫୁଲ
ଛନ ଛନ ଉପବନରେ
ସୃଜ ଅମୂଲ-ମୂଲ ।୪୩।
ମରମର ବର ଶିମ୍ବଳୀ
ଗନ୍ଧବହ ପରଶେ
ଝରଝର ଝଶ ଦଳକ—
ଦଳ ମଧ୍ଯ ପରଶେ ।୪୪।
ସନ୍ଧାସନ୍ଧ ହୋଇ ଫଳନ୍ତି
କେତେ ଚୂତ ଅନାର
ବନ୍ଧା ବନ୍ଧ ହୋଇ ରହନ୍ତି
ଶାଖେ ଶିମ୍ବଳୀ ଦଳ ।୪୫।
ଝେନ୍ଦା ଝେନ୍ଦା ଫୁଲ ଖସୁଛି
ବାତ ଘାତେ ମଉଳା
କେନ୍ଦା କେନ୍ଦା ନବ ମଞ୍ଜରୀ
ଗୃହେ ସୁଷମା ଭରା ।୪୬।
ଗୃଖୁ ଗୃଖୁ ଜୀବ ସୁମିଷ୍ଟ-
ଫଳ କଉଣା ତୋଷ
ଦେଖୁ ଦେଖୁ କାହୁଁ ଲଭିବ
ଏତେ ବଡ଼ ପୌରୁଷ !" ।୪୭।

୪୫ । ଚୂତ-ଆମ୍ବ, ଅନାର-ଡାଳିମ୍ବ ୪୬ । ମଞ୍ଜରୀ-କଢ଼,
ସୁଷମା-ଶୋଭା ।

ଉଦ୍ୟାନ ଗହନ ଭିତର  ଟଳେ ସବୁ ଅନ୍ଧାର
ପ୍ରଭାମୟୀ ଦିବ୍ୟ ସୁନ୍ଦରୀ  ଟଳେକଲେ କୁମାର ।୪୮।

କିଏ ଏ ପ୍ରମୋଦା ବିବିକ୍ତ  ସ୍ଥଳେ ବସିଛି କାହିଁ ?
କମଳ ବଦନ ବିମଳ  ଫେରି ଦିଶୁଛ ନାହିଁ !! ।୪୯।

ସୁଶ୍ୟାମ ଅମ୍ବର ଶୋଭନା  ଶୋଭି ଚାହିଁ କୁମାର
ପରଖିବା ଆଶେ ସଖାରେ  ବ୍ୟକ୍ତ କଲେ ଏ ଗିର ।୫୦।

"ଚାହିଁ ଦେଖ ସଖା ଆଳୀକେ  ପୃଷ୍ଠେ ହେମ ପିଚୁଳୀ
ବିଧୁରେ ସୃକଣୀ କମ୍ପିତ  କେତେ ଲୋତକ ଝାର ?" ।୫୧।

'ସୁତ ସୂକ୍ଷ୍ମ ତନ୍ତ୍ରୀ ସହସା  ଗୁପ୍ତେ ହେଲା ଝଙ୍କୃତ
ବିକଳେ ବର୍ଣ୍ଣିଲା ବିଳାପେ  ଅହାଃ ରୁକ୍ମିଣୀ-ସୁତ ! ।୫୨।

"ସତେ ଏ ଧାନାକୁ ଅନ୍ତର  କରି ପାରିଛୁ ଧନ ?
ତୋତେ ଚନ୍ତ୍ର ଶନ୍ତ୍ର ଯିବରେ  ମୋର କ୍ଳିଷ୍ଟ ପରଣ ।୫୩।

ଆଜି କି ଅଭାଗୀ ମାତାକୁ  "ମାଆ" ଡାକିବୁ ନାହିଁ
ତେଜି ପରିକର କଳାପ  ଭୂରେ ଭଜିଲୁ ମହୀ ।୫୪।

ଦେଖି ତୋ ନୀରସ ବିରସ  ମୁଖ କଳା ଶରୀର
ରହିଛି ଏ ପୋଡ଼ା ଜୀବନ  ଯାହା ନ ଯାଇ ମୋର ।୫୫।

କହ ଧନ ମୋର କମାଇଁ  ବାବୁ ଶୋଇଛୁ ରୁଷି
କହିଲେ ବା ଦେବ ଗଡ଼ାଇ  ମାମୁଁ ସରଗ ଶଶୀ ।୫୬।

ଖାଇବୁ ଯେବେରେ ଖୋଇଷ  ଉଠ ଲବଣୀ ସର
ପିନ୍ଧିବୁ ଯେବେ ରେ ପିନ୍ଧାଇ  ଦେବି ନବ ବସନ ।୫୭।

---

୪୯ । ବିବିକ୍ତ-ନିର୍ଜନ  ୫୧ । ସୃକଣୀ-ଓଠ  ୫୪ । ପରିକର-ପଲ୍ୟଙ୍କ

ଶୁଣିବୁ ଯେବେରେ ଶୁଣାଇ　　ଦେବ ନୂଆ କାହାଣୀ
ଉଠ ଉଠ ଦୁଃଖୀ-ସଂଘାଳ　　ଶୁଣ ଜନନୀ ବାଣୀ । ୫୮ ।

ହାସ ପରିହାସ ବଚନେ　　କାହୁଁ ଲଭିଲୁ ତ୍ରାସ
ସେଥିପାଇଁ କି ଏବା ଭୂତଳେ　　କ୍ଳେଶ ହୋଇ ବଇଷ ? ।୫୯।
କାନ୍ଦ କାନ୍ଦ ଆଳୀ ତୁମ୍ଭଇ　　କେବେ ତନୟ ଗଣ
ସ୍ନେହ ସୂତ ପୂତ ବାତ୍ସଲ୍ୟ　　ପ୍ରେମେ କେ ଉଇ ମୂର୍ତ୍ତି ।୬୦।
କେବେ ବ ମୂମୂର୍ଷ ଲପନୁ　　ଶୁଣା ନଟଲ ଗର
ପଗଲ୍‌ଭ ପଶୁଏ ରମଣୀ　　ବିଳାପିତା ଅପାର ।୬୧।
"ତା କରୁଣ ଶୋକେ　　କାରୁଣ୍ୟମୟ ହାସ ଉଦ୍ୟାନ
ପାଦପେ ପାଦପେ ଫିଙ୍ଗିଲେ　　ପୁଷ୍ପଦଳ ଭୂଷଣ ;
ବଳାପିତା କୋକ ଯୁଗଳ　　ପାନା ଦୁଃଖ କି ଗୁହି
ସରୋବରେ ଶୁଣେ କୁମୁଦ　　କର୍ଣ୍ଣ ଝଞ୍ଜ ପଳାଇ । ୬୨।

ସରସିଜ ମୃଗୀ ଦୁଃଖରେ　　ସରସିଜ କାତର
ରସପୂର୍ଣ୍ଣ ସୁଧା-ମନ୍ଦିରେ　　ଅାଶ୍ୟ କଲ ବମ୍ଭର ।୬୪।
ବଧୂରୁ ପ୍ରାଣରେ ଲେପିବା　　ଅାସେ ବାସ ଚନ୍ଦନ
ବହୁଆଣେ ବାତ ସୁମନ୍ଦ　　ନାନା ସୌରଭ ମାନ ।୬୫।
ପାନ ଦୁଃଖୀ ପକ୍ଷୀ ଚଞ୍ଚୁରେ　　ରଖି ଭକ୍ଷଣ ଫଳ
ଶୋକେ ମର୍ମାହତ ସେପାଇଁ　　କରୁନାହିଁ କବଳ ।୬୬।
ବୃନ୍ତଭଗ୍ନ ବୃନ୍ତରୁ ଖସିଲେ　　ଶୋକଭୂଷା ଲଲାମ
ମନ୍ଦାର କଣିକା ମୁଞ୍ଚିଲେ　　ନାକ-ଲଳନା-ଗ୍ରାମ ।୬୭।

---

୫୯ । ତ୍ରାସ-ଦୁଃଖ, ଅପମାନ, ୬୧ । ଲପନ-ମୂଖ, ପ୍ରଗଲ୍‌ଭା-ପାଗଳୀ
୬୨ । କୋକ-ଚକ୍ରବାକ, ୬୩ । କୁମୁଦ-କଇଁ, ୬୪ । ସରସିଜ-ପଦ୍ମ
ଆଶ୍ୟ-ମୂଖ, ୬୫ । ବଧୂର-କାଠଚ୍ଛ, ୬୭ । ନାକ-ସ୍ବର୍ଗ ।

ଶଶାଧର ବୃନ୍ଦେ ରସାକୁ  ଭାଷା ସ୍ଫୁରେନା ମୁଖେ
ନିଶାରେ ଅଳକେ ଆଲୋକେ  ଅବା ବିଳାପେ ଅଙ୍କେ ।୬୮।

ଲାବଣ୍ୟ ପ୍ରତିମା ନୟନୁ  ଶୋକାଭୂତ କଙ୍କଣ
ଖସି ପରଶୁଛି ମହୀରେ  କାଳକୁନ୍ତଳ ଦାମ ।୬୯।
ଏକାଳେ କଳିଙ୍ଗ କୁମାର  ବିମ୍ବ କପୋଳେ କର
ସଖା କନ୍ଧେ ଶିର ନୁଆଇଁ,  ଘେନା ଦୁଃଖେ ଅଧିର ।୭୦।

ସୁଚିକ୍କଣ ଅମ୍ବର ଲମ୍ବିତ  ମହୀ ରଜ ମିଶାଇ
ଆଶ୍ୱାସନା ବାଣୀ ଜମ୍ବୁକେ  ଘଡ଼ି ଘଡ଼ିକେ ଦେଇ ।୭୧।
ତେବେବ ପରମା ରମାର  ଶୋକ କଳିବ କିଏ ?
ନୀରଦେ ଧାଇଁ ଚନ୍ଦ୍ରମା  ପ୍ରାଣ ଅଧୀର ଯାଏ ।୭୨।
ଛଳ ଛଳ ନେତ୍ର ଝରିଲା  ତାଙ୍କ କୌମୁଦୀ ସାର
ଜଳ ଜଳ ନୃପ ତନୁଜ  ବୃନ୍ଦେ ଦୁଃଖେ ବିଧୁର ।୭୩।

ପର ଉପକାର ଅନ୍ତର  ଦୁଃଖେ ସମବେଦନା
ଜଣାଇବା ପେଣ୍ଠୁ ଅଟଇ  ତାର ନିତ୍ୟ ବାସନା ।୭୪।
ଶୋକ ଗଦଗଦ ବଚନ  ଭାଷେ ଯାମିନୀପତି
ପୁଚ୍ଛିଲେ ବିଳାପ କାରଣ  କହ ବଖାଣି ସତି ।୭୫।
କିଏ ତୁମେ ? କାର ବନିତା ?  କମ୍ପା କର ସ୍ୱଜନ ?
ଶୋକେ ଅବଭୂତା କ ଲାଗି  ନିରଶକ୍ତ ନୟନ ।୭୬।

---

୬୮ । ଶଶାଧର-ଚନ୍ଦ୍ର, ରସା-ପୃଥିବୀ, ୬୮ । ନିଶା-ରାତ୍ରି,
ଅଳକେ-ଝଲକାରେ, ଅଙ୍କ-ଦୁଃଖ, ୬୯ । କଙ୍କଣ-ଲୋତକ,
କୁନ୍ତଳ-କେଶ, ଦାମ-ଶ୍ରେଣୀ, କେଶ, ୭୦ । ଅମ୍ବର-ଲୁଗା
ମହୀରଜ-ଧୂଳି, ୭୨ । ନୀରଦ-ଆକାଶ,
୭୫ । ଯାମିନୀପତି-ଚନ୍ଦ୍ର ।

"'ରମ୍ଭାପତ୍ର ବାଛ ପରଶ ତଥା ରମଣୀବର
ରଦବାସ ଆସ୍ୟ କମ୍ପିଲା କୋପେ ବାରକୁ ବାର ।୭୭।

ସ୍ଫୁରି ନମ୍ରଶଳ ଲପନୁ ଗୃହେ ବନେ ବସୀ
ପରିଚୟ ଆସେ ଗୋସରେ ପୁଣି ଯାମିର ଭଣି" ।୭୮।

ଦରଦର ଭୁଣ୍ଡେ କରକ ରଦା ବୋଇଲେ ପଣ
ଛନ୍ଦି ଥିଲେ ଦନେ ମୋତେରେ ସ୍ୱୟଂ ଭୁବନ ସାର ।୭୯।

ଭାରତେ ମୋହର କୀରତି ସାଜୁଥିଲା ଉଚର
ସୁପ୍ରତିଷ୍ଠ ସେଣୁ ବାଛବେ କରେ କେତି ଆଦର ।୮୦।

"ପୁରଠ ଆସନେ ବସେ ମୁଁ କହ କହ କପଶ ?
ଧୂଳି ଧୂଷରିତ ଅବଧ କର୍ମ ଦୋଷେ ମୋହର ।୮୧।

ଦାରିଦ୍ର୍ୟତା ତଳେ ସମ୍ମାନ ମୋର ଛପିଲା ଯେବେ
ନାଦସ୍ୱ କରମ ଚନ୍ଦ୍ରମା ମୁହିଁ ବିଳାପେ ତେବେ ।୮୨।

ନାହିଁ ପରିଚୟ ପ୍ରଦାନେ ଲୋଡ଼ା ମାନସ ମୋର
ସ୍ୱଜ୍ଞାନ ବତ୍ସଳା ଜନନୀ ସୂତ ଦୁଃଖେ ବିଧୁର ।୮୩।

ଏହ୍ନ ପରିଚୟ ଯଥେଷ୍ଟ ଧନା ଅଭାଗୀ ଜଣେ
କରମ ନନ୍ଦ ମୁଁ କାନ୍ଦୁଛି ବଷ ଫଟା କଷଣେ ।୮୪।

ଯେତେବେଳେ ଥିଲି ମୁଁ ଶଶାଙ୍କ ସୁଭ୍ର ପୂର୍ଣ୍ଣ ନିର୍ମଳ
ଛନ୍ଦି ଥିବୁ ନକ୍ଷତ୍ର ବତାନୁ ପ୍ରତେ ଏମନ୍ତ ମୋର ।୮୫।

ସମସ୍ତ ରଥୀଙ୍କ ନସିବ ଶିବ ଅଶିବ ଯେନ
ଘୂର୍ଣ୍ଣେ ହୋଇଛୁ ଆଜରେ ଶଶୀ ମୁଁ ହୀନମାନ ।୮୬।

---

୭୭ । ରମ୍ଭା-କଦଳୀ, ରଦବାସ-ଅଧର
୭୯ । କରକ-ଜଳମ୍ବ, ରଦ-ଦାନ୍ତ, ୮୧ । ପୁରଠ-ସୁନା,

ଚାହିଁଣ କଳିଙ୍ଗ କୁମାର ନବୀ ଯୌବନ ବେଳେ
ସ୍ତମ୍ଭିଭୂତ ହୋଇ ଗମିଲେ ଚୁପି ଚରଣ ତଳେ ।୮୭।
"ମୂକ ସୂତଧର ତା ମାତ ଛେକି ବାଟୀକା ଖର
ସୈକତ ବନ୍ଧୁର ମାର୍ଗରେ ଚଳି ଶୋକ ଜର୍ଜର ।୮୮।
ଚାହିଁଥିଲେ କଞ୍ଜ-ଅରାତି ଭଗ୍ନ-ଯୌବନ କାଳେ
କାନ୍ଦୁଥିଲ ବନ୍ଦୀ ପ୍ରମୋଦା ଝଙ୍କା ପାଦପ ତଳେ ।୮୯।

× × ×

"ଜଳ ସ୍ରୋତପରି ସମସ୍ତ ସ୍ରୋତ ଯାଉଛି ବହି
ବିକଟ ରଜନୀ ରାକ୍ଷସୀ ଗ୍ରାସ କରୁଛି ମହୀ ।୯୦।
ତାରକା-ଦଶନ କମଳ-ସୂତ ନୟନ ଜ୍ୱଳି
ଏ ସାରା ବ୍ରହ୍ମାଣ୍ଡ ଗରଭେ ଅବା ଦେଉଛି ଗିଳି" ।୯୧।
ସହସା ମନ୍ତ୍ରୀଜ କହିଲ ସାଥୀ କର ବଦନେ
ଅପୂର୍ବ ଏ ଦୃଶ୍ୟ ଦେଖୁଛି ନାହିଁତ ମୁଁ ସ୍ୱପନେ ।୯୨।
ବଦନ ଫେରାଇ ନନ୍ଦନ ଧୀରେ ଅମ୍ବକ ମଳି
ବୋଇଲ ସାମାନ୍ୟା ନୁହଇ ଅସାମାନ୍ୟା ଏ ଆଳୀ ।୯୩।
ବିସ୍ମାରିତ ନେତ୍ରେ ପୁଷ୍କରେ ଚାହିଁ ଦ୍ୟନ୍ତେ ନନ୍ଦନ
ସହସା ବିସ୍ମୟ ପଡ଼ିଲ ମୁଖେ ଦେଲ ଚୁମ୍ବନ ! ।୯୪।
"ଅମର ଧାମର ଗନ୍ଧର୍ବୀ ଅବା କିନ୍ନରୀ କେହି
ନନ୍ଦାରଦ ବକ୍ଷେ ବିଚରି ହେମ ସ୍ୟନ୍ଦନ ବାହି ।୯୫।

---

୮୫ । ବିତାନୁ-ଆକାଶରୁ, ୮୭ । ରଥାଙ୍ଗେ-ଚକ୍ରରେ, ନସିବ-ଭାଗ୍ୟ;
୮୮ । ସୈକତ-ବାଲୁକା, ବନ୍ଧୁର-ଅବଢ଼ା ଖାବଢ଼ା,
୮୯ । କଞ୍ଜଅରାତି-ପଦ୍ମର ଶତ୍ରୁ ଚନ୍ଦ୍ର ୯୧ । ଦଶନ-ଦନ୍ତ, କମଳସୂତ
କଳି ୯୩ । ଅମ୍ବକ-ନେତ୍ର ୯୪ । ପୁଷ୍କର-ଆକାଶ୯୫ । ସ୍ୟନ୍ଦନ-ରଥ

କିବା ସୁର-ପୁର ଅପ୍‌ସରୀ ବାନ୍ଧି ଅମ୍ବରେ ଯାନ
　　ବରୁଣ ନଗର ଜଳାଶରେ ସ୍ନାନାର୍ଥେ କି ଗମନ ? ।୯୬।
ଅବା ସନ୍ଧ୍ୟାରେ ଗଗନେ ଭ୍ରମେ ଶକ୍ର କାମିନୀ
　　ହାଟକ ଘଟକ କାନ୍ତିରେ ଝଳ ବରବର୍ଣ୍ଣିନୀ ।୯୭।
ରବି ପଥେ କେଉଁ ଦେଖିଲେ ବାମା ସୁଷମା-ସୀମା
　　ସଂଶୀବେ ଛଳରେ ହେବେ କି ଏହି ଅମରୀ ରମା ? ।୯୮।
ଚଳ ଝସଲକ୍ଷେ ଶଙ୍ଖାଣ ମାରେ ଯେସନେ ଝସି
　　ସହସା ସେ ରମ୍ୟ ସ୍ୟନ୍ଦନ ନଭୁ ଆସିଲା ଖସି ।୯୯।
ବିମ୍ବୁଯ୍ବାଭିଭୂତେ ନନ୍ଦନ ଥିଲା ସେ ପଥେ ଗୁହିଁ
　　ଖସୁଥିଲେ ଶୋଭା ପିଲୁଳା ନନ୍ଦାରନ୍ଦୁଏ ମହି ।୧୦୦।
ଆସ୍ୟେହାସ୍ୟ ରେଖା ନଥିଲା ଥିଲା ଦରଧା ଭରି
　　ଅର୍ଦ୍ଧ ଚନ୍ଦ୍ରାକାର ମଣ୍ଡଳେ ମୁଥିଲେ ସୁନ୍ଦରୀ ।୧୦୧
ଅପୂର୍ବ ଦ୍ୱାବିଂଶ ଲଲନା ମଧ୍ୟେ ତରୁଣୀ-ହାର
　　ବଦନୁ କ୍ଷରୁତ ଅମର ସୁଧା ସଳାଳ ଧାର ।୧୦୨।
ଅତଳ ବିତଳ ପାତାଳେ ନାହିଁ ସେ ଶୋଭା ପରି
　　ନାନା ଆଭରଣେ ରଜତ ତନୁକାନ୍ତି ମାଧୁରୀ ।୧୦୩।
ହୀରକ ହିମାନୀ ଶିଖରୀ ହୀର କଣ୍ଠ ଚୂଡ଼ା
　　ମଣ୍ଡି ଗୁରୁ ଶିରେ ପ୍ରମୋଦା ମନେ କାହିଁଟି ବ୍ରୀଡ଼ା ।୧୦୪।

---

୧୭ । ଶକ୍ର-ଇନ୍ଦ୍ର, କାମିନୀ-ସ୍ତ୍ରୀ, ହାଟକ-ସୁନା,
୯୮ । ରବିପଥ-ଆକାଶ, ୯୯ । ଝସ-ମୀନ, ରମ୍ୟ-ସୁନ୍ଦର,
　　ନଭୁ ଆକାଶରୁ,
୧୦୨ । ଦ୍ୱାବିଂଶ ଲଲନା-ଭାରତର ୨୧ଟି ପ୍ରଦେଶକୁ ୨୨ଟି କାଳ୍ପନିକ ନାରୀ ଭାବରେ ଗ୍ରହଣ କରାଯାଇଛି । ଦିଲ୍ଲୀକୁ ମଧ୍ୟ ଗୋଟିଏ ନାରୀ ଧରାଯାଇଛି ।

ଦଣ୍ଡକରେ ଉଡ଼େ ଚଞ୍ଚଳ ଫରଫର ଅନିଳେ
ତ୍ରିରଙ୍ଗ ପ୍ରଚଣ୍ଡ ଅଶୋକ-ଚକ୍ର ମୟୂଖ ଧାରେ ।୧୦୫।
ଚରଣେ ରଞ୍ଜନ ମୁଞ୍ଜିର ରଣଝଣ ମଧୁରେ
ଦଣ୍ଡ କରେ ଦକ୍ଷ ସ୍କନ୍ଧରେ ଧ୍ୱଜା ତ୍ରିରଙ୍ଗ ଉଡ଼େ ।୧୦୬।
ଏକାଳେ ତନୟୁ ବିଗ୍ରହ ଗ୍ରାହୀ କାନ୍ଦେ ତରୁଣୀ
ବେନି ନୟନରୁ ଝରୁଛି ମାଉ ଶ୍ରାବଣୀ ପାଣି ।୧୦୭।
ସୁମନ ମଣ୍ଡିତା ସୁମନେ ମିଳି ସମିପେ ତାର
ଛଳ ଲୋଚନେ ବିହ୍ୱଳେ ପ୍ରତିକାର ଉତ୍ତର ।୧୦୮।
"ଦୁଃଖିମାରେ ଗୀର ଭାଷିଲେ ନାଶିହ୍ୱର ଭାରତୀ
କମ୍ପାଇଁ ଉତ୍କଳ ବିଳାପି ଦୁଃଖେ ହେଉ ଆରତି ।୧୦୯।
କାହିଁ ତୋ ପୂରୁବ ଗୌରବ ରବି ଉଭିଲେ କାହିଁ !
କାହିଁ ତୋ ସୁକୃତ ସମ୍ପଦ ଆଜ ଗଲା ଲେ କାହିଁ ? ।୧୧୦।
ଲଭିଥିଲୁ ଯୋଗ୍ୟ ଆସନ ନିଜ ସୌଭାଗ୍ୟ ବଳେ
କହୁଥିଲୁ ନା ତୁ ବିଭବଶାଳୀ ଅବନୀ ତଳେ ।୧୧୧।
କିନ୍ତୁ କିମ୍ପା ଆଜ ବିଳପୁ କହ କହରେ ଧନ୍ୟା
ଫାଟି ଯାଉଛି ମୋ ଅନ୍ତର ଯେଣୁ ତୁମୋ ଭଗିନୀ ।୧୧୨।
ବିଶ୍ୱଶାନ୍ତି ଯଜ୍ଞେ ଯେବେଳେ ଆତ୍ମ ଉତ୍ସର୍ଗ ମୋର
ସେକାଳେ ଭଗିନୀ ଶୁଣିଲି ତୋର ବିଳାପ ସ୍ୱର ।୧୧୩।
ତୋ ଦୁଃଖୁ ମୋ ଦୁଃଖ ବଳିଲା, କହ କାରଣ ତାର
ଆଉ କେଉଁ ପାଇଁ ଅବାଲେ ନକ୍ରେ କରୁ ଚିତ୍କାର' ? ।୧୧୪।

---

୧୦୫ । ଚଞ୍ଚଳ-ପତାକା, ଅନିଳ-ପବନ, ମୟୂଖ-କିରଣ, ତେଜ ।
୧୦୬ । ମୁଞ୍ଜିର-ନୂପୁର, ୧୦୯ । ଉତ୍କଳ-ଉତ୍କଳମାତା,
୧୧୩ । ପୃଥିବୀରେ ଶାନ୍ତି ପ୍ରତିଷ୍ଠା କରିବା ଭାରତର କାମ୍ୟ ।

ଆହାଃ ଆହାଃ ଉଠେ ଜର୍ମିଲି ବଧୂଙ୍କର ଅନ୍ତର
କଳଙ୍କ-କୁମାର ନୟନୁ ନୀର ଝରେ ଝର୍ ର ।୧୧୫।
"କାନ୍ଦ କାନ୍ଦ ସ୍ୱଦେଶ ଉତ୍କଳ ଶୁଣ ଭଗିନୀଗଣ
ମୋ ମଣି 'ଉତ୍କଳମଣି'ଏ ଦେଇଅଛି କଷଣ ।୧୧୬।
ମୋ କୋଳେ ପ୍ରମିଳା ଜବଲେ ଦେଖ ପଡ଼ିଛି ଶୋକ
ଛକେଲେ ଯେତେ ମୁଁ ଡାକଲେ ଉଠେନ ଶୁଣୁଛି କାହିଁ ।୧୧୭।
ମାନ ଅର୍ଥ ପ୍ରାଣ ନନ୍ଦନ ଦୁଃଖେ ଅବା ମୋ ଧନ
ଭେକରେ ଆହାର ଠେଳିବା ଆସେ ଏ ଅନଶନ ।୧୧୮।
ହଜିଛି ନବଶା ମରୁରେ ଆଶା କାଞ୍ଚନ ଜ୍ୟୋତି
କହନ୍ତ ଭଉଣୀ କେବେ ସେ ପୁଣି ଉଠିବ ତେଜ ।୧୧୯।
କାହିଁଗଲା ନୀଳ ଚିଲିକା ବକ୍ଷେ ବୋଇତ ମାଳ
ଅଣୁଥିଲେ ଧନ ମୋ ଧନ ଆହାଃ କାହିଁ ସେ ବେଳ ? ।୧୨୦।
କ୍ରୁର ଦାରିଦ୍ର୍ୟର କବଳେ ପଡ଼ି ସନ୍ତାନ ମୋର
ଅନ୍ନବିନେ ଜୀର୍ଣ୍ଣପଞ୍ଜର ଶୁଷ୍କକଙ୍କାଳ ସାର ।୧୨୧।
ଲୁଟିଲାଣି କଳା ଭାସ୍କର କାଟେ ଦେଉଳେ ଦାଉଁ
ହତ ହେଲା ଗତ ଗୌରବ ବସି ଝୁରୁଛି ଲୁହ ।୧୨୨।
ସୌର୍ଯ୍ୟ ବୀର୍ଯ୍ୟପଣେ ନଗଣେ ଲବେ କାହାକୁ ମୁହିଁ
ମୋ ସନ୍ତାନ ଅଙ୍ଗେ ସେବକ ଏବେ ନଦେଖେ କାହିଁ ।୧୨୩।
ବନ୍ୟା ମହାମାରୀ ମଣ୍ଡଳ ବେଳୁ ବେଳ ପ୍ରବଳ
ଅର ପାଶେ ଶିର ବଳିଲେ ପ୍ରିୟ ସନ୍ତାନ କୁଳ ।୧୨୪।
ଭାତୃ ପ୍ରେମେ ବନ୍ଦୀ ନ ହୋଇ ମାତୃ ପ୍ରେମେବି ନୋହି
ଦାବାଗ୍ନି କରେ ବେଦନ ପୂର୍ଣ୍ଣ ଭୋଜନ ଚାହିଁ ।୧୨୫।

---

୧୧୬ । ଉତ୍କଳମଣି-ଗୋପବନ୍ଧୁ, ୧୧୭ । ପ୍ରମୀଳା-କନ୍ୟା,
୧୨୩ । ଠେଲ-ବସ୍ତା

ନବ ଯଉବନୀ କୁମାରୀ ମୋର ନମାଳ ଚେଳ
କେତେକ ଆଶ୍ରୟ କରନ୍ତି ମହୀରୁହ ବଲ୍କଳ ।୧୨୬।
ଅଉ କେତେ ତନୁ ଢ଼ାଙ୍କିବା ଆଶେ କରନ୍ତି ଏହା
ସାତ ସିଆଁ ଛିଣ୍ଡା ଦରବା ନୂଆ ଢଦାରେ ଯାହା ।୧୨୭।
ଅନ୍ନବିନେ ଶୀର୍ଣ୍ଣ ବଦନ କହ ହୋଇ ମୁଁ ମାତ
କେଉଁମନର ଅବା ଦେଖିବ ଏହା କହୁଲ ସତ ।୧୨୮।
ଥିଲ ମୋ ନୟନ-ଅଞ୍ଜନ-ଜନ-ନୟନ-ତାର
'ଉତ୍କଳ-ମଣି' ସେ ନାହାନ୍ତିଲେ ଆଜ ଶୋକ ପାଶୋର ।୧୨୯।
କେଉଁ ଶୁଭ ଶିଶୁ ଦେଖି ମୁଁ ଯାନା କାଟିବି ଧନ
କା ଉପରେ ଦେବି ମୋ ସୁତ ମୁଖେ ମୁଠିଏ ଅନ୍ନ" ।୧୩୦।
"ଭାଷିଲେ ଭାରତୀ ପ୍ରବୋଧେ ଆଲୋ ଭଗିନୀ ମୋର !
ତେବେବେହେଁ ତୋ ସୁତ ଭାରତେ ସବୁଁ ବଳଠୁର ।୧୩୧।
ନଜାଣୁ କି ଏଥି ଦାମିନୀ ମୋର ଉତ୍କଳ ରାଣୀ
ଦେଖିଛୁ ତେ। ସୁତ କୌଶଳ ଶୁଣ କହୁଛି ପୁଣି ।୧୩୨।
ନୀଳ ପାରାବାର ଅତଳ ତଳେ ଖଟାଇ ବଳ
ବଙ୍କାମ ବୁଦ୍ଧିରେ ଖଞ୍ଜାନ୍ତି କେତେ କଳ କୌଶଳ ।୧୩୩।
ପାରବାରେ ପାରଦ୍ୱୀପ ନେ ଲଭେ ନବ ଜୀବନ
ନରକର ଦୁଃଖ ଗଣି ନେ କମ୍ପା ବିଷାଦ ମନ ? ।୧୩୪।
ଦେଶ ବିଦେଶରୁ ଆଣିବେ ସୁନାମୋହର ବହି
ବାଦମସ୍ତେ ତେଇ ପଥର ଲୌହ-ପୋତ ବୋଟେଇ ।୧୩୫।
ହୀରକୁଦେ ଆନକଟ ନେ ସେତୁ ସଣ୍ଡ କମାଳ
କ୍ଷଣପ୍ରଭା ପ୍ରଭା ପୂରନ୍ତେ ତୋର ବକ୍ଷ ମଞ୍ଜୁଳ ।୧୩୬।

---

୧୩୨ । ପାରବାର-ସମୁଦ୍ର, ୧୩୫ । ପୋତ-ଜାହାଜ

ଦୁଃଖପରେ ସୁଖ ମିଳିବ ପୁଣି ଲଭିବୁ ଧନ
ପାରିନୁ ବୁଝିବୁ ଉତ୍କଳ ତୋର ଗୌରବ-ମାନ ।୧୩୭।
ନୀଳାଚଳ ଚନ୍ଦ୍ର ଶ୍ରୀ ଜଗନ୍ନାଥ ସଙ୍ଗ ନୀଳମାଧବ
ମାଳ ବାଉଧର ଏ ବିଶ୍ୱ ତୋର ଷାକ୍ଷୁଛି ପଦ ।୧୩୮।
ବଡ଼ ଦେଉଳରେ ବସିଛନ୍ତି ବଡ଼ ଦେବତା ସଙ୍ଗ
ଯାତ୍ରୁ ଭଗ୍ନି ମେଳେ ତୋ ଅଙ୍କେ ନ ଯାଶୁକ ଛଇଲା ! ।୧୩୯।
ବଡ଼ ଭୋଗ ଖାଏ ତୋ ପୁତ୍ର ଲଭି ବଡ଼ ଆଶିଷ
ବଡ଼ ଦ୍ୱଜତ ତୋ ତନୟ ମନେ ନ ବଢ଼େ ରୋଷ ।୧୪୦।
ବଡ଼ବାନା ପରି 'ଆରତ ତ୍ରାଣ' ଉଡ଼ାନ୍ତି ଚନ୍ଦ୍ରେ
ବଡ଼ ଦୁଃଖୀ ତୋର ତନୟ କହ କେଉଁ ପ୍ରକାରେ ? ।୧୪୧।
ବଡ଼ ଛବି ଭରି ସୁଷମା-ମୂର୍ତ୍ତି-ବିଶ୍ୱ-ଆଗାର
ବଡ଼ଦାଣ୍ଡ ଧାମେ ରହିଛୁ ତେବେବି ତୁ ବଧୂର ।୧୪୨।
ବଡ଼ କଲ୍ଲୋଳିନୀ ବେଢ଼ିଛି ତୋର ବକ୍ଷେ ମଞ୍ଜୁଳେ
ବଡ଼ କାହିଁ ଆଉ କହନ ଏତେ ଅବନୀ ତଳେ ? ।୧୪୩।
ବଡ଼ ବଳାହକ ମୈନାକ ନାକ ବହିଛି ଶିରେ
ବଡ଼ ପାରାବାର ଧୋଉଛି ତୋର ପଦ୍ମ ନୀରେ ।୧୪୪।
ବଡ଼ବଡ଼ କେତେ ଲେଖକ କବି ଶାରଳା ଦାସ
ବଡ଼ ଠାକୁରଙ୍କ ବନ୍ଧନେ ଜୟଦେବ ସାହସ ।୧୪୫।
କଟକେ କଟକେ ଶୋଭିତ ବାରବାଟୀ ଯେ ଗଡ଼
ଦୂରୁ ଦେଖି ପର ଦରଶେ ଛଟଣ ହୁଅନ୍ତି ଆଡ଼ ।୧୪୬।

---

୧୪୧ । ରମଣୀୟ ଚିଲ୍କା ହ୍ରଦ ପୁରୀ ଜିଲ୍ଲାରେ ଅବସ୍ଥିତ, ୧୪୨ । ବଡ଼କଲ୍ଲୋଳିନୀ-ମହାନଦୀ,

କୋଣାରକ କଳାକୌଶଳ ଭବେ ଅଛି କି କାହିଁ
ନୀଳ ସିନ୍ଧୁକୂଳରେ ରାଜିତ ଦ୍ୟାବା ଯେ କେତେ ଶୋଭା ।୧୪୭।
ବାର ବରଷର ଧରମା ଚ୍ଳ ମାରିଲା ପାର
ବାରଶ ବଢ଼େଇ ରହିଲେ ଗୃହକଳା ଭାସ୍କର ।୧୪୮।
ବାରବାର ପୁଣି କହୁଛି ମୁହିଁ ଅନାଥା ଜଣେ
ବତ୍ସର କହନ ଉତ୍କଳ ଆଜି କି ଭାବୁ ମନେ ? ।୧୪୯।
କନକ ନଗରର ଶାରଳା କଟକରେ ଚଣ୍ଡିକା
ଯାଜପୁର ଧାମେ ବିରଜା ପୁଣି ବନ୍ଧୁ ଛୁ ଶଙ୍କା ! ।୧୫୦।
ପୁରୀକ୍ଷେତ୍ରେ ପୂରଅଛନ୍ତି ଅଗଣିତ ଟିବାଣୀ
ଦେବ ଭୋଗ୍ୟ ଭାଗ୍ୟ ଲଭନ୍ତି ମୋର ସୂନା ଭଉଣୀ ।୧୫୧।
କହ କେତେ ଆଉ ସମ୍ପଦ ଶିଖି କହିବ ତୋର
ଠାକୁରାଣୀ ପଦ ମାନନ୍ତି ତୋତେ ଜଗତ ନର ।୧୫୨।
ଠାକୁର ଦେଶର ସନ୍ମାନ ତୋର ଲଭନ୍ତି ସୁତ
ଠାକୁରେ ସମରେ ପ୍ରବୃତ୍ତ ରକ୍ଷଣାର୍ଥେ ଭକତ ।୧୫୩।
ଦହିଁ ଝିଅଠାଇ ଚପଲେ ସ୍ୱର୍ଣ୍ଣ ମୁଦ୍ରିକା ଦେଇ
ତୋ ସୁତ ରକ୍ଷଣେ ଗମନ୍ତି ଦଧି ମାର୍ଗଣେ ପିଇ ।୧୫୪।
ଏତେ ଏତେ ଦେବଦେବୀଙ୍କ ତୋତେ ଥାଉଁ ସଦୟ
ଅନ୍ନକଷ୍ଟ ସୁତ କପଣେ ବସି ବିଳାପୁ ହାୟ ।୧୫୫।
ଜଗତ କରତା ଧରିଛନ୍ତି ଅଙ୍କେ ସୌଭାଗ୍ୟ ବଳେ
ତେବେବି କହୁଛି ଉତ୍କଳ ହୀନା ଅବନୀ ତଳେ ! ।୧୫୬।
କି ଏ ନବୀଏ ଲେ ସନ୍ମାନ ତୋତେ କହୁ ଏହିରେ !
ନ ଜାଣୁ କି ମୁହିଁ ଭାରତୀ ଅସତ୍ୟ ମୋ ବଚସି ।୧୫୭।
ସତ୍ୟ ଶାନ୍ତି କ୍ଷମା ଅହିଂସା ମୋର ମହାମନ୍ତ୍ର
ମୋ ପାଶେ ନାହିଁଟି ଉଚିତ ହତ ଆଦେଶା ଦର ।୧୫୮।

ଇପ୍‌ସିତ କାମନା ମୋର ଏ ଶୁଣ କହୁଛି ତୋତେ
ଦେଇପାରେ ଶାନ୍ତି ଯଙ୍କରେ ପ୍ରାଣ ଜଗତ ହିତେ ।୧୫୯।
ସୁଖ ଶାନ୍ତି ସଙ୍ଗେ ଲଭନ୍ତୁ ମୋର ଶୁଭ କାମନା
କିନ୍ତୁ ତୁ ଭଗିନୀ କାନ୍ଦୁଛୁ କାହିଁ ରେ ଚନ୍ଦ୍ରାନନା ? ।୧୬୦।
ଭୀମବଳ କଳେ କୋଇନ୍ଥା କଳ ନାହିଁ ତୁ ବଳ
ସ୍ୱାର୍ଥେ ଧାବନ୍ତୁ ସନ୍ତାନେ ତୋର ଭୀରୁ ଦୁର୍ବଳ ।୧୬୧।
କଳାସ୍ଥାପତ୍ୟର ଉତ୍କର୍ଷ ମୂକ ଅକ୍ଷର ଶର
ଜୀବନ୍ତ ଚିତ୍ରିଲ ସୃଜନେ କଳାକର ଗୃହୁଷ୍ଟି ।୧୬୨।
ଉତ୍କୀର୍ଣ୍ଣ ଶିଳା ବକ୍ଷରେ ସଂଖ୍ୟାବୃତ ବିଗ୍ରହ
ଛଡିଆ ଦେଉଳେ ସମ୍ମୁଖେ ତୋର ସ୍ମୃତି ଆଗ୍ରହ ।୧୬୩।
ଅଙ୍କୁରିତ କର ବିସ୍ମୃତ ବିଶ୍ୱବାସୀ ମାନସେ
ଜାଗିଛି ଲାଗିଛି ସନ୍ତାନ ତୋର ନବ ଉଲ୍ଲାସେ ।୧୬୪।
ବୀର ପ୍ରସବିନୀ ତୁ ପୁଣି ଶୁଭ ଆଶିଷ ଦାୟୀ
ତୋ ଆଶିଷେ ସୁତ ନକର ଦ୍ୱାର ସଂଗ୍ରାମ ଜୟୀ ।୧୬୫।
‘ଧମନୀରେ ଯାର ବାହିତ ବୀର ରକ୍ତ-ତଡ଼ିତ
ଜାଣିଛି ନାହିଁ ତା ଜାତକ ରଣ ପ୍ରାଙ୍ଗଣେ ଭୀତ’ ।୧୬୬।
ଏ ବିପଦ କାଳେ ଧଇର୍ଯ୍ୟଧର ବସିଥା ମନେ
ଆସିବ ସୁଶୀମ ସମୟ ସୁଖ ଭୁଞ୍ଜିବୁ ଦିନେ ।୧୬୭।
ଏବେଳେ କୁମାର ଅମାତ୍ୟସୁତ ଶ୍ରବଣେ କଲେ
ଆଉ କଥାଏକ ଘଟଣା ଉତ୍କଳରେ ବୋଇଲେ ।୧୬୮।
କହିଲେ ଉତ୍କଳ ଏ ସ୍ମୃତି ପାଇଁ ନୁହଁ ବିକଳ
ରଣଜୟୀ ସ୍ମୃତି ଲେଉଟୁ ପୁଣ ଜନନୀ କୋଳ ।୧୬୯।

---

୧୬୦ । ସମ୍ପ୍ରତି-ବର୍ତ୍ତମାନ ।

ତୋ ଦୁଃଖେ ଦେ ଦିନ ଯାଉଛ ତାର ଶର ପ୍ରମିଳା
ବୀର ପ୍ରସବିନୀ ସୁତ ଏ ଦୁହେଁ ଶୋକର ଅଧୀର ।୧୭୦।
ପଡ଼ିଲେ ବିପତ୍ତି, ତେଜ ସେ ଝୋଡ଼ି ଉଠିବ ତେଇଁ
ଏଥିପାଇଁ ଅନୁଶୋଚନା ମନେ ଅଶ୍ରୁ କପାଳି " ।୧୭୧।
"ଆଉ ଶିକ୍ଷା ନେବେ ଉତ୍କଳ ଘଟେ କହ ଭଉଣୀ
କପରି ଦେଖିବ ମୋ ସନ୍ତାନ ମୁଖେ ଆହାର ଆଣି ? ।୧୭୨।
ଦିନୁଦିନ ବନ୍ୟା ମଡ଼କେ ସଡ଼ି ତନୟ ମୋର
ହା ଅନ୍ନ ହା ଅନ୍ନ ଶବଦେ କରେ ଆର୍ତ୍ତ ଚିତ୍କାର ! ।୧୭୩।
ନୃତ୍ୟ ବାସ୍ତବର ବୁଭୁକ୍ଷେ ସୌଧ ସମ୍ମାନ ଚୂଡ଼ା
ଦାରିଦ୍ର୍ୟତା ତଳେ ଛପିଛି ଯେଣୁ ସେ ଦୈନ୍ୟ ବ୍ରୀଡ଼ା ।୧୭୪।
'ଧନବଳେ ଜନ ସମାଜେ ମାନ ମିଳଇ ହେଲେ
ଗୁଣର ପୂଜାରୀ କେତେ ବା ଛନ୍ତି ଏ ଧରା ତଳେ ।" ।୧୭୫।
ପ୍ରବୋଧ ବୋଇଲେ ଭାରତୀ କହ ତୋ ସୁତ କାନେ
କେତେ ଦିନେ ଏତେ କଷଣ ଆଉ ପଡ଼ିବ ମନେ ? ।୧୭୬।
ରଖିଛି ତ ଜଳ-ସମ୍ପଦ ବନ-ସମ୍ପଦ ରାଶି
ଶକ୍ତି କଣ୍ଠମାଳ ରଖିଛି କାହିଁ ରହିଛ ବସି ? ।୧୭୭।
କଷ୍ଟ କଲେ ତୁଷ୍ଟ ମିଳଇ ଗୀତା ଶାସ୍ତ୍ର ସମ୍ମତ
କରମ ମୂଳର ଏ ଧରା ହୁଅ କର୍ମ ଉନ୍ମତ୍ତ ।୧୭୮।
ବିଜ୍ଞାନ ବୁଦ୍ଧିରେ ଖଟାନ୍ତୁ ସବେ କଳ କୌଶଳ
ଅଳ୍ପ ପରିଶ୍ରମେ ମିଳିବ ଅବା ଅଦ୍ଭୁତ ଫଳ ।୧୭୯।
ସୃଷ୍ଟି କରିବାକୁ ସନ୍ତାନେ ଯେବେ ଭାବନ୍ତୁ ମନେ
ନବ ଅନୁରାଗେ ଉଠନ୍ତୁ ତେବେ ତନୟ ଗଣେ ।୧୮୦।

---

୧୬୮ । ଇନ୍ଦିରା-ଲକ୍ଷ୍ମୀ, ବନ-ଜଳ, ଜଙ୍ଗଲ ।

ଭାଇ ଭାଇ ମଧ୍ୟେ ଭ୍ରାତୃ ଯେ ସମପ୍ରୀତି ବେଭାର
ଜ୍ଞାନ ନବୀନ ଦାନରେ ପୂର୍ଣ୍ଣ କରନ୍ତୁ ଘର ।୧୮୧।
'ସ୍ୱାର୍ଥମେଧ ଯଜ୍ଞେ ହିଂସାକୁ ଦେଲେ ଦଅ ଆହୁତି
ହିଂସା କମଠତା ରହିଲେ ହେବ ନାହିଁ ପ୍ରଗତି' ।୧୮୨।
ଧନଜନ ଗୋପଲକ୍ଷ୍ମୀରେ ଯେବେ ଭରିବ ଘର
ଉନ୍ନତ ବୃଷରେ ପ୍ରଦାନ ବୀଜ-ଉନ୍ନତ ସାର ।୧୮୩।
ଯେପରି ବୁଣିବ କାଟିବ କଥାଁ ଭାବନା ଆଜି
ନିଜକୁ କରିଲେ ସମୃଦ୍ଧ ଆଉ ଥିବ କା ଦାଉ ? ।୧୮୪।
ପ୍ରବେଶିବେ ନଷ୍ଟେ ଇନ୍ଦିରା ଦ୍ୱାରେ ତୋହର ଆସି
ଗତ କଥା ଆଉ ନ ଭାଳ ଧନୀ ମନରେ ବସି" ।୧୮୫।

× × ×

ଭାରତୀ ସେନେହ କୋମଳ
ଧୀର ମଧୁ ସମ୍ଭାଷ
ପାଇଣ ଉତ୍କଳ ଲଭିଲେ
ପରା ମହା ସନ୍ତୋଷ ।୧୮୬।
"ବାଜିଗଲା ପିକ କଣ୍ଠରେ
ଉଷା ଭାଷା ଊର୍ମିମ
ଭାଜିଗଲା ତନ୍ଦ୍ରା ପଟଳ
କର୍ଣ୍ଣିଗଲା ମରମ ।୧୮୭।

---

୧୮୧ । ପୂର୍ଣ୍ଣ-ଚନ୍ଦ୍ର-ମଣୀ—ଚନ୍ଦ୍ର, ୧୮୫ । ଇନ୍ଦିରା-ଲକ୍ଷ୍ମୀ ।

ଛୁଟିଲା ଆନନ୍ଦ ଲହରୀ
ନୀଳ ସାଗର ବୁକେ
ଉଠିଲା ଆନନ୍ଦ କଲ୍ଲୋଳ
ବ୍ୟାପିଗଲା ଭୂଲୋକେ ” ।୧୮।
ଭାରତୀ ପ୍ରବୋଧ ବଚନ
ବାଜୁ ଥିଲା ଅନ୍ତରେ
ପୂର୍ଣ୍ଣ-ଚନ୍ଦ୍ର-ମଣୀ ଚଳିଲେ
ଅସ୍ତ ଶଇଳ ଚୂଳେ ।୧୮୯।
ଗୃହୁଁ ଗୃହୁଁ ଅ.ନେ ଅମ୍ବରେ
କଲେ କାପ୍ତା ବିସ୍ତର
ବସି ଚିନ୍ତୁଥିଲେ ଉତ୍କଳ
ଦେଇ କପୋଳେ କର ।୧୯୦।
ଉଠୁଥିଲା ମାତା ଅନ୍ତରୁ
କୋହ-ଭେଦୀ-ଦରଦ
ଚିହ୍ନୁଥିଲେ ମହୀ କରକେ
ବ୍ୟଥା ଭରା ହୃଦ ।୧୯୧।
ଖେଳୁଥିଲା ମୁଖ ମଣ୍ଡଳେ
ବ୍ୟଥା ବିଷଣ୍ଣ ଧାରା !
ବହିଥିଲେ ନୀଳ ଅମ୍ବରୁ
ଇନ୍ଦୁ ଉଜ୍ଜଳ-ଧାରା ।୧୯୨।
ଉତ୍କଳ ନନ୍ଦନ ଅନ୍ତରେ
ହେଲା ପରଶୁ ଘାତ
ବ୍ୟାକୁଳେ ବେଦନ୍ତ
କୁମାର ମାରି ଲଲାଟେ ହାତ ।୧୯୩।

ମାତେ ଜର ଜର, ହୋଇଛି
ତାର ସୌମ୍ୟ-ବଦନ
ଜନନୀ ବାତ୍ସଲ୍ୟ ମମତା
ଦେଇଅଛି କଠିନ ।୧୯୩।

ଶତ ଉତ୍କଳର ଅତୀତ
ଗତ କାହାଣୀ କେତେ
ପ୍ରବେଶି ନମିଲେ ସେ କତେ
ମାତ ଚରଣେ ଗତେ ।୧୯୪।

ଉଠାଇ ଜନନୀ ଗୋଟାଇ
କୋଳେ ନେଲେ ବଦନ
ଧନ୍ୟ ସେ ଜନନୀ ଅନ୍ତର
ଧନ୍ୟ ସନ୍ତାନ-ପ୍ରେମ ! ।୧୯୫।

ପୋଛୁ ଶ୍ୟାମନୀଳ ତଡ଼ପେ
ସୂତ ମୁଖ ଲୋଚନ
"ବୋଇଲେ ବାବୁରେ କମ୍ପାଇଁ
ଏତେ କରୁଛୁ ଶୋକ ? ।୧୯୬।

ତୋ ଜନ୍ମନେ ହୃଦେ ମୋହର
ଫୁଟେ କୋଟି ପଦ୍ମାଳି
ନ କାନ୍ଦ ନ କାନ୍ଦ ଧନରେ
ମୋର ନେତ୍ର-ପିତୁଳୀ ।୧୯୭।

କହ କେଉଁ କଥା ଅଭାବ
ବାପ ହୋଇଛି ତୋର !
କହିଲେ ଦେବି ମୁଁ ଆଣିରେ
ଧନ ନ କାନ୍ଦ ମୋର " ।୧୯୮।

"ଶୋକ ବେଗରେ ତନୟ
ଭାଷେ କହ ଜନନୀ
କେଉଁପରି ପୁଣି ଲଭିବ
ପୂର୍ବ ଶୁଭ୍ର ବରଣୀ ? ।୨୦୦।

କିପରି ଘୁଞ୍ଚିବ ମାତାଲୋ
ତୋର ଦୁର୍ଦ୍ଦଶା କହ
କାହିଁ ପାଇଁ ବସି ବିଜନେ
କାନ୍ଦ ବହୁତୁ କୋହ ? ।୨୦୧।

"କହିଲେ ସେନେହ ବଚନେ
ଶୁଣ ଧନ ମୋହର
ନବ ଅନୁରାଗ ରଞ୍ଜିଲେ
ତାହା ଆସିବ ଫେରି " ।୨୦୨।

ଏକାଳେ ଉଦ୍ୟାନୁ ଶୁଭିଲା
କଳ-ବିହଗ-ବୋଲ
ଗୃହୁଁ ଗୃହୁଁ ମାତା ଯେ ଷ୍କୁ
ସ୍ପେଶ ହେଲେ ଅନ୍ତର ।୨୦୩।

ଧରିଥିଲେ ବକ୍ଷେ ଜନନୀ
ସୁତ 'ଉତ୍କଳ-ଶ୍ରୀ'
କ୍ଷୁଦ୍ର ନଦୀରଦେ ଯେସନ
ଏକ ଶୁଭ୍ର ଖ-ମଣି ।୨୦୪।

---

୨୦୪ । ଖ-ମଣି—ସୂର୍ଯ୍ୟ, ଚନ୍ଦ୍ର, ଅ.କାଶର ମଣି ।

ଫେରିଆସି ସୁତ କହିଲ
          ମନ୍ତ୍ରୀ ସୁତେ ତତ୍‌କ୍ଷଣ
ନକାଟି ଉତ୍କଳର ସନ୍ତାନେ
          ଏଥା ଦିଅ ପ୍ରମାଣ ।୧୦୪।
"ପ୍ରଭାତୀ ତାରକା ବୁଡ଼ିଲା
          ହେଲା ପ୍ରଭାତ କାଳ
ଉଦ୍ୟାନୁ ଫେରିଲେ
          ଉତ୍କଳ ନରପତି ଦୁଲାଳ ।୧୦୬।
ମନେ ପଡ଼ୁଥିଲା ଜନନୀ
          ସୁଧା-ମଧୁର ଭାଷା
ଭାବୁଥିଲେ ସତେ ଘୁଞ୍ଚିବ
          ଘନା ଜନନୀ ଦଶା !!! " ।୧୦୮।

— ଃ ସ ମା ପ୍ତ ଃ —

---



---

ମୁଦ୍ରାକର :—ହିଙ୍ଗୁଳାଦେବୀ ପ୍ରିଣ୍ଟର୍ସ, କଟକ – ୯